# ମହୀୟସୀ କୈକେୟୀ

ଲେଖକ : ଜଗଚନ୍ଦନ ନିରଞ୍ଜନ ରଥ
ଗ୍ରାମ - ଶ୍ରୀକରପୁର ଶାସନ
ପୋ : ଗୋବର, ଘୁମୁସର
ଜି : ଗଞ୍ଜାମ

ପ୍ରକାଶିକା : ଶ୍ରୀମତୀ ଅପ୍‌ସରା ଦେବୀ
(ସ୍ୱର୍ଗୀୟ ଜୀବନ ସାହୁଙ୍କ ଧର୍ମପତ୍ନୀ)
ଗ୍ରାମ : ଗୋଷାଣି ନୂଆଗାଁ
ବ୍ରହ୍ମପୁର - ଗଞ୍ଜାମ

ଦ୍ୱିତୀୟ ସଂସ୍କରଣ
ନବବର୍ଷ - ୨୦୦୧

# ଅଭିମତ

ମର୍ଯ୍ୟାଦା ପୁରୁଷୋତ୍ତମ, ରାମଚନ୍ଦ୍ର ଭାରତୀୟ ସଂସ୍କୃତିର ସାର୍ଥକ ପ୍ରତିନିଧି, ରାମ ଚରିତ ଭାରତୀୟ ଜନତାର ସର୍ବାଧିକ ପ୍ରିୟକଥା ଏବଂ ରାମାୟଣ ଭାରତୀୟ ସାହିତ୍ୟର ଅଙ୍ଗୀକାର୍ଯ୍ୟ । ଯୁଗେ ଯୁଗେ ଏହି ବିଷୟବସ୍ତୁର ଅନୁସରଣରେ ବହୁ କବି ଓ ସାହିତ୍ୟିକ ଭାରତୀୟ ବାଣୀ ଭଣ୍ଡାରକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଭାରତୀୟତାକୁ ସଞ୍ଜୀବିତ କରି ରଖିଛନ୍ତି । ରାମାୟଣର ପ୍ରତ୍ୟେକଟି ଚରିତ୍ରର ଆବେଦନ ଅସୀମ । କେବଳ ରାମ, ସୀତା କିମ୍ବା ରାବଣ ନୁହନ୍ତି । ଊର୍ମିଳା ସୂର୍ପଣଖା କିମ୍ବା ଜାମ୍ବବାନ ମଧ୍ୟ ଏ ଦେଶର ଜନଜୀବନକୁ ଗଭୀର ଭାବେ ଆନ୍ଦୋଳିତ କରିଛନ୍ତି । କୈକେୟୀ ରାମାୟଣର ଏକ ବହୁ ନିନ୍ଦିତ ଖଳ ଚରିତ୍ର । କିନ୍ତୁ ଏହି ଚରିତ୍ରଟି ବ୍ୟତୀତ ରାମାୟଣର କଥାବସ୍ତୁ ବୈଚିତ୍ର୍ୟହୀନ ଏବଂ ରାମାବତାର ବ୍ୟର୍ଥ ଓ ନିଷ୍ଫଳ । ଏହି ନିରପରାଧିନୀ ନାରୀଟି ବାରମ୍ବାର ଦଶରଥଙ୍କ ଜୀବନ ରକ୍ଷା କରିଛି, ସପତ୍ନୀ ପୁତ୍ର ରାମଚନ୍ଦ୍ରଙ୍କୁ ଜନ୍ମ ଦାତ୍ରୀ ଠାରୁ ଅଧିକ ଭଲ ପାଇଛି, ଅଭିଶପ୍ତ ଦଶରଥଙ୍କୁ ମୃତ୍ୟୁ ଜନିତ ମୁକ୍ତି ଦେଇଛି ଏବଂ ସର୍ବୋପରି ଦେବକାର୍ଯ୍ୟରେ ସହାୟତା କରି ରାବଣର ଅତ୍ୟାଚାରରୁ ଦେବ, ମାନବ ମୁନି ଋଷି ସମସ୍ତଙ୍କୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସମସ୍ତ ଲୋକାପବାଦ, ଅପଯଶ ଓ କଳଙ୍କକୁ ନିଃସଙ୍କୋଚରେ ଆସ୍ୱାଦ କରିଛି । ଏଣୁ କୈକେୟୀ ରାକ୍ଷସୀ ନୁହେ ମହୀୟସୀ ।

ଏହି ମହୀୟସୀ ଚରିତ୍ରଟିକୁ ଭିତ୍ତି କରି କବି ଶାନ୍ତନୁ ନିରଞ୍ଜନ ରଥ ଲେଖିଛନ୍ତି ତାଙ୍କର କ୍ଷୁଦ୍ର କାବ୍ୟ ମହୀୟସୀ କୈକେୟୀ । ଶାନ୍ତନୁ ରଥ ଏହା ପୂର୍ବରୁ ବହୁ କାବ୍ୟ, କବିତା ଜଣାଣ ଭଜନ ରଚନା କରିଛନ୍ତି । ଲେଖିବାର ଆଗ୍ରହ ତାଙ୍କର ପ୍ରବଳ । କର୍ମମୟ ଜୀବନର ଜଞ୍ଜାଳ ଭିତରେ ସେ ଗୋଟିଏ ପରେ ଗୋଟିଏ ରଚନା ସୃଷ୍ଟି କରି ଚାଲିଛନ୍ତି, ତାକୁ ପ୍ରକାଶ କରିଛନ୍ତି ଅତ୍ୟନ୍ତ ନିରସଳ ଭାବରେ । ତାଙ୍କ ରଚନାର ଭାଷା ସରଳ, ନିରାଡ଼ମ୍ବର ଓ ସାଧାରଣ ବୋଧଗମ୍ୟ ଅନେକତ୍ର ତାହା ଲଳିତ, ମଧୁର । ଶାନ୍ତନୁ ରଥଙ୍କ ଲେଖନୀ ଚିରଚଞ୍ଚଳ ରହୁ ଏବଂ ସେ ଯଶସ୍ୱୀ ହୁଅନ୍ତୁ ଏହା ହିଁ କାମନା ।

ପ୍ରଫେସର ଡ଼ଃ ସୁଦର୍ଶନ ଆଚାର୍ଯ୍ୟ
ନିର୍ଦ୍ଦେଶକ, ଆଞ୍ଚଳିକ ଗବେଷଣା କେନ୍ଦ୍ର,
ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟ, ଭଞ୍ଜବିହାର

**ଅଧ୍ୟାପିକା ଡକ୍ଟର ଶାନ୍ତିଲତା ସାହୁ**
ଏମ୍. ଏ. ପି. ଏଚ୍. ଡ଼ି. ଡ଼ି, ଲିଟ୍
ଖେମୁଣ୍ଡି ମହାବିଦ୍ୟାଳୟ
ଦିଗପହଣ୍ଡି, ଗଞ୍ଜାମ

## ( ଆଉ ପଦେ )

ଜୀବନରେ ଯାହା ସତ୍ୟ ଶିବ ସୁନ୍ଦରର ମହିମାରେ ମହିମାନ୍ୱିତ, ତାକୁ ହିଁ ଆପଣାର କରି ନିଅନ୍ତି ପ୍ରକୃତ ଲେଖକ ବା ସମାଲୋଚକ । ଭାରତୀୟ ସଂସ୍କୃତ ଓ ପୁରାଣମାନରେ ରାମାୟଣର କୈକେୟୀ ବହୁ ନିନ୍ଦିତା ହେଲେ ବି ବହୁ ବନ୍ଦିତା ହୋଇ ଯାଇଛନ୍ତି ବରେଣ୍ୟ କବି ଶ୍ରୀଯୁକ୍ତ ନିରଞ୍ଜନ ରଥଙ୍କ ଲେଖନୀ ସ୍ପର୍ଶରେ । ଏହି ନୀରବ ସାଧକ ସୂକ୍ଷ୍ମଦୃଷ୍ଟି ନେଇ ଏହି ଚରିତ୍ରଟିର ମୂଲ୍ୟବୋଧକୁ ପାଠକ ନିକଟରେ ସ୍ପର୍ଶାତୁର କରି ଦେଇଛନ୍ତି । ମହୀୟସୀ ହୋଇ ଯାଇଥିବା କୈକେୟୀଙ୍କ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ନିଶ୍ଚୟ ସମାଜକୁ ବେଶ୍ ପ୍ରଭାବିତ କରିବ — ଏହା ହିଁ କାମନା ।

ଡ଼ା ଶାନ୍ତିଲତା ସାହୁ
୧୪ । ୧୨ । ୨୦୦୦

# ଉତ୍ସର୍ଗ

ବ୍ରହ୍ମପୁର ସହର ଗୋଷାଣୀ ନୂଆ ଗାଁ ନିବାସୀ
ଧର୍ମପ୍ରାଣ ମହିଳା ଛ୍ଳମଗ ଅପ୍‌ସର ସାହୁଙ୍କୁ
ପ୍ରୀତ୍ୟୁପହାର

## ନିଜ କଥା

ଯୁଗେ ଯୁଗେ କୈକେୟୀ ମହୀୟସୀ, ଏହା ଚିରନ୍ତନ ସତ୍ୟ । କୈକେୟୀ ନଥିଲେ ରାବଣ ନିଧନ ତଥା ପବିତ୍ର ରାମାୟଣ ଗ୍ରନ୍ଥ ଆଜି ଘରେ ଘରେ ପୂଜିତ ହୋଇନଥାନ୍ତା । ବ୍ରହ୍ମପୁରରେ ଅବସ୍ଥାନ କାଳରେ ଦୀର୍ଘ ଦଶ ବର୍ଷ ଧରି ମାନସ ସମ୍ରାଟ, ମାନସ ଗଣେଶ, ମାନସ ମନ୍ଦାକିନୀ ପ୍ରଭୃତି ବହୁ ମାନସ ପ୍ରବକ୍ତାଙ୍କ ଠାରୁ ଶୁଣି ଶୁଣି ତାକୁ ଗ୍ରନ୍ଥପଟରେ ସାଇତି ରଖି, 'ମହୀୟସୀ କୈକେୟୀ' ନାମକ ମାତ୍ର ବତିଶି ପୃଷ୍ଠାର ଖଣ୍ଡିଏ ଛୋଟି ବହି ପ୍ରକାଶ କରିଥିଲି, କିନ୍ତୁ ଦେଖାଗଲା, ବହି ଖଣ୍ଡିକ ଦିନକୁ ଦିନ ଶ୍ରଦ୍ଧାଳୁ ରାମାୟଣ ପ୍ରେମୀ ପାଠକ ମଣ୍ଡଳରେ ବିଶେଷ ଆଦୃତ ଲାଭ କଲା । ଏପରିକି ବହି ଖଣ୍ଡିକ ନେଇ କେହି କେହି ଜେରକ୍ସ କପି କରିବା ପାଇଁ ମଧ୍ୟ ପଛାଇଲେ ନାହିଁ । ଏଣୁ ସେହିମାନଙ୍କ ପ୍ରୋତ୍ସାହନରେ ମୁଁ ଏହି ଦ୍ୱିତୀୟ ସଂସ୍କରଣ ସାମାନ୍ୟ କଳେବର ବୃଦ୍ଧି ସହ ପୁନର୍ବାର ପାଠକ ମହଲରେ ଆଦୃତ ହେଲେ ଶ୍ରମ ସାର୍ଥକ ହେବ ।

— ଲେଖକ —

# ମହୀୟସୀ କୈକେୟୀ

ସରଯୂ ନଦୀର ତୀରେ ସେ ଅଯୋଧ୍ୟା
ରାଜଧାନୀ କୋଶଳର
ମର୍ତ୍ତ୍ୟେ ସ୍ୱର୍ଗପୁର ସମାନ ନଗରେ
ନାହିଁ ଯା'ର ପଟାନ୍ତର ॥ ୧ ॥

ପ୍ରବଳ ପ୍ରତାପୀ ଅଜରାଜ ସୁତ
ଦଶରଥ ମହୀପତି
ଦଣ୍ଡରେ ଯା'ର ଚଳଇ ସ୍ୟନ୍ଦନ
ଅବାଧ ଅବାଟ ଗତି ॥ ୨ ॥

ଦେବ ପ୍ରଶଂସିତ ପରମ ଧାର୍ମିକ
ଦଶରଥ ନରବର
ଅଯୋଧ୍ୟା ନଗରେ ପାଳୁଥିଲେ ପ୍ରଜା
ଇନ୍ଦ୍ରସମ ବୀରବର ॥ ୩ ॥

ସର୍ବ ସୁଲକ୍ଷଣୀ କୌଶଲ୍ୟା, ସୁମିତ୍ରା
ରାଜାଙ୍କର ଦୁଇ ରାଣୀ
ପାତିବ୍ରତ୍ୟ ଧର୍ମ ପାଳି ଚଳୁଥାନ୍ତି
ସ୍ୱାମୀଙ୍କର ମନ ଜାଣି ॥ ୪ ॥

ମହାନନ୍ଦ ମଧ୍ୟେ  ଥିଲେ ହେଁ ସ୍ୱଜନ
ହେଉଥାନ୍ତି ମର୍ମାହତ
ଦୁଇ ରାଣୀଙ୍କର  ଗର୍ଭେ ନ ଫଳଲ
ନୋହିଲା ସୁପୁତ୍ର ଜାତ ॥ ୫ ।

ଯଉବନ କାଳ  ଅତିକ୍ରମ ପରେ
ଉପାୟ ବିଧାନ ହୋଇ
ତୃତୀୟ ରାଣୀରେ  ମନ ବଳାଇଲେ
ରଘୁବଂଶ ରକ୍ଷା ପାଇଁ ॥ ୬ ॥

ବସ୍ତୁ ଦେଶ ବୁଲି  ଜଣାଏ ଉତ୍ତର
ଶୁଣନ୍ତୁ ନୃପ ଶେଖର
କେକୟ ନୃପତି  କୈକେୟୀଙ୍କ ସୁତା
କ ବର୍ଣ୍ଣିବ ରୂପ ତାର ॥ ୭ ॥

ଘନ ମେଘ ମଧ୍ୟେ  ଚପଳା ସମାନ
ଝଟକଇ ଶ୍ୟାମାକର
ରମା, ଉମା ସମ  ହେଉ କନ୍ୟା ଓ
ଭାବୁଛି ମୁଁ ନିରନ୍ତର ॥ ୮ ॥

ଦନ୍ତୀ ବା କୁଦନ୍ତୀ  ନୁହେ ସେହି କନ୍ୟା
ନୁହେ ସେହି ପିଙ୍ଗଳାକ୍ଷୀ
ନୁହେ ସେ ରୋମାଞ୍ଚ  ଦେଖ ହେ ରାଜନ
ନୁହେ ସେହି ତାମ୍ରକେଶୀ ॥ ୯ ॥

ସୁହର୍ଷିଣୀ ପୁଣି　　　　ସୁବୃତ୍ତ କେଶୀ ସେ
　　ବନ୍ଧୂଳି ଅଧରଯୁକ୍ତା
ନାଭି ତା'ଗମ୍ଭୀର　　　　ହେମାଙ୍ଗୀ, ମୃଗାକ୍ଷୀ
　　ସମଦନ୍ତୀ ଯେହ୍ନେ ମୁକ୍ତା ॥ ୧୦ ॥
ମୁଣି ଯା' ଶୁଣିଲ　　　　କର୍ଣ୍ଣେ ହେ ରାଜନ
　　ଅଟେ ସେହୁ ବୁଦ୍ଧିମନ୍ତ
ସେବା ପରାୟଣା　　　　ନାରୀ ମଧ୍ୟେ ଗଣ୍ୟା
　　ବୈଦ୍ୟ ଶାସ୍ତ୍ରେ ବହୁ ଖ୍ୟାତ ॥ ୧୧ ॥
ଅତୀବ ପ୍ରବୀଣା　　　　ଜ୍ୟୋତିଷ ଶାସ୍ତ୍ରରେ
　　ଜାଣେ ଭୂତ ଭବିଷ୍ୟତ
ଅଘଟନ ପାଇଁ　　　　ପ୍ରତିକାର ଚିନ୍ତା
　　କରେ ନ ହୋଇଣ ଭୀତ ॥ ୧୨ ॥
ହିଂସା, ଦ୍ୱେଷ, ଲୋଭ　　　　ମୋହ, କାମ, କ୍ରୋଧ
　　ନାହିଁ ତାହାଠାରେ ଲେଶ
ମହନୀୟା, ବନ୍ଦ-　　　　ନୀୟା, ପୂଜନୀୟା
　　ବରଣୀୟା ହେ ନରେଶ ॥ ୧୩ ॥
ଦୟା, ପ୍ରେମ, ଶ୍ରଦ୍ଧା　　　　ଭକ୍ତି, ପ୍ରୀତି, ଗୁଣେ
　　ସଭିଙ୍କୁ ଆଦର କରେ
କ୍ଷୁଧାଉଁ, ତୃଷାଉଁ　　　　ଅସହାୟଙ୍କର
　　ଅନାୟାସେ ଦୁଃଖ ହରେ ॥ ୧୪ ॥

ସୁଚନ୍ଦ୍ରୀ, କଶୋଣ୍ଣ ସୁରୁହାସିନୀ ସେ
ଭଜନ, ପୂଜନ ପ୍ରିୟ
ଶୈବ୍ୟା, ଅନସୂୟା ଭଳି ନାନା ନାରୀ
ସାଧ୍ୱୀ ହୋଇବ ନିଶ୍ଚୟ ॥ ୧୫ ॥

ସାଧୁ ସନ୍ୟାସୀଙ୍କୁ ଦୂରୁ ଦେଖି ସଦା
ସାଷ୍ଟାଙ୍ଗ ପ୍ରଣାମ କରେ
ପିତୃ, ମାତୃ ସେବା ବାତ୍ସଲ୍ୟ ମମତା
ପରିପୂର୍ଣ୍ଣ ତା' ହୃଦରେ ॥ ୧୬ ॥

ସର୍ବ ଗୁଣ-ଯୁକ୍ତା କୈକେୟ ଦୁହିତା
ଆସିଲେ ଏ ଅନ୍ତଃପୁରେ
ତାର ମଧ୍ୟେ ବୃନ୍ଦ ପାଟ ରାଣୀ ଗଣେ
ଶୋଭା ପାଇବେ ସକଳରେ ॥ ୧୭ ॥

ସାର ପ୍ରସବିନୀ ହେବେ ସେ କୁମାରୀ
ବଢାଇବେ କୁଳ ଧନ
ରଘୁ ବଂଶ ରବି ଯାବତ ଚନ୍ଦ୍ରାର୍କେ
ଅସ୍ତ ନହେବ ନରେଶ ॥ ୧୮ ॥

ଅନନ୍ୟା ସୁନ୍ଦରୀ କୈକେୟୀ କୁମାରୀ
କଇକେୟୀ ଗୁଣ ଗ୍ରାମ
ଶୁଣି କର୍ଣ୍ଣ ପଥେ ବାମେ ଜର୍ଜରିତ
ହେଲେ ଅଯୋଧ୍ୟା ରାଜନ ॥ ୧୯ ॥

ରଥବରେ ଚଢ଼ି          ଚଳିଲେ ଭୂଷତେ
କେକୟ ଦେଶେ ଭୂଦେବ
କୈକେୟ ସମୀପେ          ବସି ସମାଦରେ
ଆଗତ କଲେ ପ୍ରସ୍ତାବ ॥ ୧୦ ॥

ପ୍ରସ୍ତାବ ଶୁଣନ୍ତେ          କୈକେୟ ରାଜନ
ସବସ୍ନେ ସସ୍ନେହରେ
ଦେବେ କି ଉତ୍ତର          ସ୍ଥିର ନ ପାରିଲେ
ବୁଦ୍ଧି କି ତାଙ୍କ ବଶ୍ନରେ ॥ ୧୧ ॥

ରାଜ ଚକ୍ରବର୍ତ୍ତୀ          ଅଯୋଧ୍ୟା ନୃପତି
ହେବେ ଜାମାତା ତାଙ୍କର
ଏହାଠାରୁ ବଳି          ଅଛି କି ସୌଭାଗ୍ୟ
ଈଶ୍ୱର କୃପା ମାତର ॥ ୧୨ ॥

ରାଜାଙ୍କର ତେଣେ          ଯାଉଛି ଯୌବନ
ଏଣେ ଏକ ମାତ୍ର କନ୍ୟା
କେଉଁ ସୁଖ ଆଣେ          ବେବେ ଅବସ୍ଥରେ
ଢବେକ ଢଏ ଚାତୁନା ॥ ୧୩ ॥

ତଥାପି ସେ ମନା          ନ କରିବେ କେବେ
ହେଲେ ରାଜ ଦଶରଥ
ଅଯୋଧ୍ୟା ରାଇଜେ          ରାଜା କରିବାକୁ
କୈକେୟୀ ଜନ୍ମିତ ସୁତ ॥ ୧୪ ॥

ସନ୍ତାନ ବର୍ଦ୍ଧନ ଅଯୋଧ୍ୟା ରାଜନ
ସମ୍ମତ ପ୍ରଦାନ କରି
ଅବକାଶେ ଆସି ଉପସ୍ଥିଲେ ଦେଖେ
ସଙ୍ଗେ କଇକେୟୀ ଧରି ॥ ୨୫ ॥

କଇକେୟୀ ଏଣେ କାୟା ସଙ୍ଗେ ଛାୟା
ପରି ରହି ଅନୁକ୍ଷଣେ
ରାଜାଙ୍କ ସହିତ କାର୍ଯ୍ୟ କରୁଥାନ୍ତି
କର୍ମଯୋଗୀ ଯଥା କର୍ମେ ॥ ୨୬ ॥

ଏ ସମୟେ ଦିନେ ଆସି ଶଚୀପତି
ଦଶରଥ ସମୀପରେ
ଜଣାଇଲେ ସ୍ୱର୍ଗ- ପୁର ସମାଚାର
ଅତି ବିରସ ମନରେ ॥ ୨୭ ॥

ଶମ୍ବର ଅସୁର ଆସି ମୋ' ଭୁବନେ
ସକଳ ସମ୍ପଦ ହରି
କରି ଦେବ ଗଣେ ବାନ୍ଧି ରଖି ଅଛି
କଷ୍ଟ ଦେଉଛି ଅପାର । ॥ ୨୮ ॥

ମହା ଯୁଦ୍ଧେ ତାକୁ ଜିଣି ନ ପାରି ମୁଁ
ଆସିଛି ତୁମ୍ଭ ପାଶରେ
ତୁମ୍ଭ ହସ୍ତେ ଅଛି ତାହାର ମରଣ
କହିଲନ୍ତି * ଭୂଣଧର ॥ ୨୯ ॥

---

* ଭୂଣଧର—ବ୍ରହ୍ମା

ଶୁଣି ଦଶରଥ କଇକେୟୀ ·ସଙ୍ଗ
ଚଳିଲେ ସରଗ ପୁରେ
ସିଂହ ବିକ୍ରମରେ ଆରମ୍ଭିଲେ ଯୁଦ୍ଧ
ଆରୋହୀ ନିଜ ରଥରେ ॥ ୩୦ ॥

ତୁମୁଳ ସଂଗ୍ରାମ ବେଳେ କୈକେୟୀଙ୍କ
ଦୃଷ୍ଟିରେ ପଡ଼ିଲା ଆସି
ଦଶରଥ ରଥୁଁ ଚାକକଣ୍ଟା ଏକ
ଖୁଣ୍ଟୁଁ ଖୁଣ୍ଟୁଁ ଗଲା ଖସି ॥ ୩୧ ॥

କି ବୁଦ୍ଧି କରିବେ କାହାକୁ କହିବେ
ଚିନ୍ତିତ ମନେ କୈକେୟୀ
ଶୂନ୍ୟ ଜାଗାରେ ସେ ଅଙ୍ଗୁଳି ସାହାଯ୍ୟେ
ରଥକୁ ନେଲେ ଚଳାଇ ॥ ୩୨ ॥

ସମୀପେ କୈକେୟୀ ନଥିଲେ ସେ ରଥ
ହୋଇ ଖଣ୍ଡ ବିଖଣ୍ଡିତ
ଅକାଳ ମରଣ ବରଣ କରନ୍ତେ
ମହାବଳୀ ଅଜ ସୁତ ॥ ୩୩ ।

ପତି-ପ୍ରାଣା ପତ୍ନୀ କୈକେୟୀଙ୍କ ଏହି
ଅସୀମ ଧୈର୍ଯ୍ୟ ଦେଖିଣ
ଆଚମ୍ଭିତ ହୋଇ ଧନ୍ୟ ଧନ୍ୟ କଲେ
ସରଗେ ଦେବତା ଗଣ ॥ ୩୪ ॥

ଶମ୍ବରାସୁରର    ମାୟା ଯୁଦ୍ଧେ ରଣ
ଶତ ଶତ ଶରର
ସେବା ଦେଖି ରାଜା    ବଧିଲେ ତାହାକୁ
ମାରି ଶବ୍ଦଭେଦୀ ଶର ॥ ୩୫ ॥
ଦଶରଥ ସମାନ    ରୂପ ମଣ୍ଡଳରୁ
ଦେହ ସାରା ଶତ ଚିହ୍ନ
ଦେଖି ମର୍ମାହତ    ହେଲେ କଇକେୟୀ
ସେବା ଯତ୍ନେ ଦେଲେ ଧ୍ୟାନ ॥ ୩୬ ॥
ଜନ ହାତେ ଥିବା    ମହୌଷଧି ଆଣି
ସାରା ଦେହ ପ୍ରଲେପନେ
ସ୍ୱାମୀଙ୍କର ଶତ    ଶୁଖାଇ ଦେଲେ ସେ
ମାତ୍ର ଦୁଇ ଚାରି ଦିନେ ॥ ୩୭ ॥
ଦେବବୈଦ୍ୟ ସେହି    ଅଶ୍ୱିନୀ - କୁମାର
ପାରି ନଥିଲେ ଯା' କରି
କୈକେୟୀ ସତୀଙ୍କ    ସେବା ଉପଚାରେ
ଆଚମ୍ବିତ ହେଲେ ହରି ॥ ୩୮ ॥
କି ବର ମାଗୁଛ    ମାଗ ମୋର ପ୍ରିୟେ
ପୁଚ୍ଛନ୍ତେ ଅଯୋଧ୍ୟା ମଣି
ଦୟା ଥାଉ ଯଥା    ବେଳେ ମୁଁ ମାଗିବି
ଭାଷିଲେ କୈକେୟୀ ରାଣୀ ॥ ୩୯ ॥

ପୁଣି କହୁଅଛେ ପାଦ ଅଙ୍ଗୁଳରେ
ଦଶରଥ ରାଜାଙ୍କର
ଦୁଷ୍ଟ ବ୍ରଣ ଏକ ବାହାର ହୋଇଲେ
ଯାତନା ଦେଲା ଅପାର ॥ ୪୦ ।

ରାଜ ସଙ୍ଗ ଛାଡ଼ ପାତ୍ର ମନ୍ତ୍ରୀଙ୍କୁ ସେ
କହିଲେ ସକଳେ ଶୁଣ
ସୂର୍ଯ୍ୟବଂଶ ଲୋପ ହେଲା ଆଜଠାରୁ
ନାହିଁ ଆଉ ପରମାଣ ॥ ୪୧ ॥

ପୁତ୍ର ହୀନ ରାଜା ଦୁଃଖ ଭର କଣ୍ଠେ
ଘୋଷନ୍ତେ ଏମନ ଗୀର
କର୍ଣ୍ଣଶ୍ରେଣୀ ସମ ସଭ୍ୟଙ୍କ ଚକ୍ଷୁରୁ
ବହିଲା ଲୋତକ ଧାର ॥ ୪୨ ॥

ସ୍ୱୟଂ ଧନ୍ୱନ୍ତରି ମିଳିଲେ ଏକାଳେ
ଅଯୋଧ୍ୟା ରାଜ ସଭାରେ
କହିଲେ ଏହାର ନାହିଁ ପ୍ରତିକାର
ମୋ ନଜର ଜ୍ଞାତସାରେ ॥ ୪୩ ॥

ଏକ ମାତ୍ର ପନ୍ଥା ଅନ୍ୟ କେହି ଯେବେ
ବ୍ରଣ ମୁଖେ ମୁଖ ଦେଇ
ଶୋଷିବ ସେ ପୂଜ ଶୋଣିତ ବ୍ରଣରୁ
ବେଦନା ଯିବ ଉଭେଇ ॥ ୪୪ ॥

ରାଣୀ, ପାଟରାଣୀ ସର୍ବ ପ୍ରିୟଜନ
ଲୁଣ୍ଠିତ କାହିଁ ଏପର୍,
ନ କରିବା ପାଇଁ ଭୂମ ରହି ଗଲେ
ଶୁଣି ନ ଶୁଣିଲ୍ପ ପରି ॥ ୪୫ ॥

ପତି ବିନା ଗତି ନାହିଁ ନାରୀଙ୍କର
ପତି ସୁଖେ ଯେହ୍ନ ସୁଖୀ
ପତି ଦୁଃଖେ ଦୁଃଖୀ ନ ହୋଇ ପାରନ୍ତି
ପତିବ୍ରତାରେ ନ ଲେଖି ॥ ୪୬ ॥

ପତି ମୋର ପ୍ରାଣ ପତି ମୋ' ଜୀବନ
ଦୁଃଖ ବା କେତେ ଦେଖିବ
ବ୍ରଣ ମୁଖେ ମୁଖ ଭରି, ସୁନିଶ୍ଚିତେ
ପୂଜ ଶୋଣିତ ଶୋଷିବ ॥ ୪୭ ॥

ଏପରି ନିଷ୍ପତ୍ତି କରେ ସେ କୈକେୟୀ
ବ୍ରଣ ମୁଖେ ମୁଖ ଭରି
ଶୋଷିଲେ ଶୋଣିତ ପୂଜ ଅପବାଦ
ପତିପ୍ରାଣା ଘୃଣ ଧରି ॥ ୪୮ ॥

ପାଟରାଣୀ ହୋଇ ଅପନା ଶୋଷଣେ
ସଂସାରର ପରାକାଷ୍ଠା
ଦେଖାଇ ଦେଲେ ଯେ ରାଣୀ କଇକେୟୀ
ଆଦର୍ଶ ରମଣୀ ନିଷ୍ଠା ॥ ୪୯ ॥

କିଛି କ୍ଷଣ ପରେ ଦୁରାରୋଗ୍ୟ ବ୍ୟାଧି
ଯନ୍ତ୍ରଣା ହୋଇଲା ଦୂର
ପୁଚ୍ଛିଲେ ରାଜନ ମୋ ପ୍ରିୟ ସଙ୍ଗିନୀ
ମାଗ ଇଚ୍ଛା ମତେ ବର ॥ ୫୦ ॥

ପୂର୍ବ ପରି ରାଣୀ ଭାଷିଲେ ଏବେ ମୋ
ଲୋଡ଼ା ନାହିଁ ହେ ପାର୍ଥିବ
ଏପରି ସମୟେ ମାଗିବି ଯେ ବେଳେ
ନିପୁର ହ୍ବରେ ଲାଗିବ ॥ ୫୧ ॥

ପ୍ରଭୁ ପଦେ ଛଦେ କୈକେୟୀ ରାଣୀଙ୍କୁ
ଦେବ କୂଟ ଯାଉଥାଏ
ଭଲ ପାଇଁ ଯାହା କରନ୍ତି ସେ ସବୁ
ବିପରୀତ ଫଳ ହୁଏ ॥ ୫୨ ॥

ଏ ସମୟେ ସ୍ବର୍ଗ, ମର୍ତ୍ତ୍ୟ, ପାତାଳରେ
ଘଟେ ନାନା ଅଘଟଣ
ଦୁର୍ଭାଗ୍ୟ ବଶରୁ ରାବଣ ହସ୍ତରେ
ଯାତ ନସ୍ତ ଦେବ ଗଣ ॥ ୫୩ ॥

କ୍ଷୀରବ୍‌ଧୀର ତଟେ ସକଳ ଅମର
କରନ୍ତି ଆକୁଳେ ସ୍ତୁତି
ଭାସିଗଲୁ ଦୁଃଖେ ରଖ ନାରାୟଣ
ରଖ ହେ କମଳାପତି ॥ ୫୪ ॥

ତ୍ରିପୁର ବିଜୟୀ     ରାକ୍ଷସ ରାବଣ

ଯାର ଲଢ଼ିବା ଜୁମର

କ୍ରୀତ ଦାସ ପଣେ     ରଖିଛି ଆମ୍ଭଙ୍କୁ

ସ୍ୱର୍ଗ କରି ଛାରଖାର ॥ ୫୫ ॥

ଦେବଙ୍କ ବିକଳ     ଦେଖି ନାରାୟଣ

ଆଶ୍ୱର୍ଷିବେ ଦେଲେ ବର

ଚଳ ଦେବ ଗଣ     ନ ହୋଇ ବିମନ

ସହିବ ଦୁଃଖ ଏଥର ॥ ୫୬ ॥

ରାବଣ ନିଧନେ     ଅଯୋଧ୍ୟା ଭୁବନେ

ମାନବ ରୂପରେ ମୂର୍ତ୍ତି

ଜନ୍ମ ନେବ ମାତା     କୌଶଲ୍ୟା ଉଦରୁ

ଅତି ଅଳ୍ପ ଦିନେ ଯାଇ ॥ ୫୭ ॥

ଛପନ ଘଣ୍ଟାକୁ     ବର ପାଇଅଛି

ରାବଣ ବ୍ରହ୍ମାଙ୍କ ବରେ

ଚଉଦ ଘଣ୍ଟାରେ     ମରଣର ଘାଟ

ରଖିଅଛି ମାତ୍ର ଥରେ ॥ ୫୮ ॥

ବଞ୍ଚିଲେ ସେଥିରୁ     ନୋହିବ ମରଣ

ଶତ ଚେଷ୍ଟାରେ କାହାର

ଦ୍ୱିଗୁଣ ତେଜରେ     ଧ୍ୱଂସ କରିଦେବ

ଧରାଧାମ ସୁର ପୁର ॥ ୫୯ ॥

ମରଣ କାଳକୁ ଚଉଦ ବରଷ
ଥିବ ବିମାତା ବଚନେ
ପିତା ସତ୍ୟ ପାଳ ଭାଇ ଭାର୍ଯ୍ୟା ସେନ
ଚଳିବ ଘୋର ବିପିନେ ॥ ୭୦ ॥

ସେଠୁ ବିପିନରୁ ସୀତା ହେଲେ ହରି
ନେଇ ରାବଣ ଲଙ୍କେଶ
ଭ୍ରାତା, ପୁତ୍ର ସହ ମରିବ ସଂଗ୍ରାମେ
ସ୍ୱର୍ଣ୍ଣ ଲଙ୍କା ହେବ ଧ୍ୱଂସ ॥ ୭୧ ॥

ପ୍ରତିଜ୍ଞା ପୂରଣ ପାଇଁ ନାରାୟଣ
ଚତୁ ଅଂଶ ପ୍ରଭାବରେ
ଶୌର୍ଯ୍ୟ, ବୀର୍ଯ୍ୟ ନେଇ ଜନମ ଲଭିଲେ
ଅଜେୟ ଅଯୋଧ୍ୟା ପୁରେ ॥ ୭୨ ॥

ଜ୍ୟେଷ୍ଠ ସୁତ ରାମ କୌଶଲ୍ୟା ଉଦରୁ
କୈକେୟୀ ଗର୍ଭେ ଭରତ
ଯମଜ ସନ୍ତାନ ଲକ୍ଷ୍ମଣ, ଶତ୍ରୁଘ୍ନ
ସୁମିତ୍ରା ଜଠରୁ ଜାତ ॥ ୭୩ ॥

ଶ୍ରୀରାମ ଜନମ ଶୁଣି ଦେବଗଣ
ଅମରାବତୀ ନଗରେ
ଦୁନ୍ଦୁଭି ବଜାଇ ନୃତ୍ୟ ଆରମ୍ଭିଲେ
ଗାଇ ଗୀତ ସୁମଧୁରେ ॥ ୭୪ ॥

ବୀଣା ବଜାଇଲେ ନାରଦ ମହର୍ଷି

ତାଣ୍ଡବ ନୃତ୍ୟ ଯେ ଶିବ

ଚତୁର୍ବେଦ ଗାନ କଲେ ଋଷିଗଣ

ଆନନ୍ଦ କେ ବା କହିବ ॥ ୭୫ ॥

ଦଶ ଦିଗପାଳ ବ୍ରହ୍ମା ସହିତରେ

ସର୍ବେ ଆରମ୍ଭିଲେ ସ୍ତୁତି

ରକ୍ଷା କର ରକ୍ଷା କର ପରଂ ବ୍ରହ୍ମ

ଜୟ ଜୟ ଦାଶରଥୀ ॥ ୭୬ ॥

ନରାକାର ନରଂ- ଜନ କୃପାନିଧି

ବାଳ ଭାବେ ଧରଣୀରେ

ଆରମ୍ଭିଲେ ଧୂଳି ଖେଳ ନାନା ଭାବେ

ଭ୍ରାତା ମାନଙ୍କ ସଙ୍ଗରେ ॥ ୭୭ ॥

କୈକେୟୀଙ୍କ ସ୍ନେହ ବନ୍ଧନରେ ସଦା

ବାନ୍ଧି ହୋଇ ରହି ଥାନ୍ତି

ଉପଦେଶ ଅବା ନିର୍ଦ୍ଦେଶ ତାଙ୍କର

ତିଳେ ମାତ୍ର ନ ଲଙ୍ଘନ୍ତି ॥ ୭୮ ॥

ମଣୋହିରେ ରଜା ନ ବସନ୍ତି କେବେ

ସଙ୍ଗେ ନଥିଲେ ଶ୍ରୀରାମ

ରଜ ବାଟୀ ସାରା ଖୋଜି ବୁଲୁ ଥାନ୍ତି

ହେଇ ଉଚ୍ଚେ ସେତେ ଭ୍ରମ ॥ ୭୯ ॥

କୌଶଲ୍ୟା, ସୁମିତ୍ରା          ଦଶରଥ ଧନେ
ଡାକ ଡାକ ଥକ ଗଲେ
ଖେଳ ଛାଡ଼ି ଦେଇ          ଆସିବାକୁ ରାମ
ସଂପୂର୍ଣ୍ଣ ନାରାଜ ହେଲେ ॥ ୭୦ ॥

କଇକେୟୀ ଶେଷେ          ଡାକ ଦେଲେ ରାମ
ଆସ ଧନ ମାଣିକ ମୋର
ପିତାଙ୍କ ସହିତ          ମଣୋହି କରିବ
ହେଲାଣି ବେଳ ଉଚ୍ଛର ॥ ୭୧ ॥

ଶୁଣନ୍ତେ ସେ ଡାକ          ଏକା ଦଉଡ଼ରେ
ମିଳିଲେ ବିମାତା ପାଶେ
ପିତାଙ୍କ ସହିତ          ମଣୋହି ସାରିଣ
ବିଶ୍ରାମ କଲେ ହରଷେ ॥ ୭୨ ॥

ଅନ୍ୟ ଧନେ ମଧ୍ୟ          ଥିଲେ କୈକେୟୀ
ଡାକ ଡାକ ରାମ ରାମ
କହିଲେ ନିଷ୍ଠୁରେ          ପିଅ ମା' ଯଦ୍ୟପି
ରଖିବ ଗୋଟିଏ ପଣ ॥ ୭୩ ॥

ବଡ଼ ହେଲେ ମୋତେ          ଚଉଦ ବରଷ
ବନକୁ ପଠାଇ ଦେବ
ଦେଲେ ଦେବ ଯେହ୍ନୁ          ଯେତେ ନିର୍ଯ୍ୟାତନା
କାହା କଥା ନ ମାନିବ ॥ ୭୪ ॥

ନାରାୟଣ ମାୟା ଛାର ନାଶ୍ଚ ଅବା
ଜାଣନ୍ତେ କେଉଁ ପ୍ରକାରେ
ନଷ୍ଟେ ପଠାଇବ ନ ବୁଝ ଅର୍ଥ
କହିଲେ ରାଣୀ ସଧୀରେ ॥ ୭୫ ॥

ଦେବ କାର୍ଯ୍ୟ ସିଦ୍ଧ ହେବ ସୁନିଶ୍ଚିତେ
ଜାଣି ସେହୁ ଆଖଣ୍ଡଳ
କୈକେୟୀ ମସ୍ତକେ ପୁଷ୍ପ ବୃଷ୍ଟି କଲେ
ଯେତ ବିବୁଧ ସକଳ ॥ ୭୬ ॥

ବୟସ ପଞ୍ଚମେ ବଶିଷ୍ଠ ଆଶ୍ରମେ
ବିଦ୍ୟା ଆରମ୍ଭିଲେ ରାମ
ଅତି ଅଳ୍ପ ଦିନେ ସକଳ ଶାସ୍ତ୍ରୀୟ
ବିଦ୍ୟାରେ ହେଲେ ନିପୁଣ ॥ ୭୭ ॥

ଷୋଡ଼ଶ ବରଷେ ବିଶ୍ୱାମିତ୍ର ସଙ୍ଗେ
ଯଜ୍ଞ ରକ୍ଷା ଅର୍ଥେ ଗଲେ
ବାଟରେ 'ତାଡ଼କା' 'ସୁବାହୁ' ବିନାଶି
ମୁନି ମନ ତୋଷ କଲେ ॥ ୭୮ ॥

ପଥେ ଯାଉଁ ଯାଉଁ ପାଷାଣୁ ମୁକତ
କଲେ ଗଉତମ ନାରୀ
ସୀତାଙ୍କୁ ବିବାହ କଲେ ମିଥିଳାରେ
ଶିବ ଧନୁ ଭଗ୍ନ କରି ॥ ୭୯ ॥

କଥୋପ କଥନେ  ବଶିଷ୍ଠ ମହର୍ଷି
କହିଲେ ହନେ ଶ୍ରୀରାମ
ସୀତା ବିବାହରେ  ଲାଗି ଅଛି ଦୋଷ
ତୁମ୍ଭଙ୍କୁ ମାତୃ ହରଣ ॥ ୮୦ ॥

ଭୂ-ଗର୍ଭୁ ଯେ ହନୁ  ଜନ୍ମ ନେଇଛନ୍ତି
ଜନକ ଦୁଲ୍ଲଣୀ ସୀତା
ସେହି ହନୁ ସେହି  ହୋଇ ସାରଛନ୍ତି
ଚଉଦ ଭୁବନ ମାତା ॥ ୮୧ ॥

ବସିଷ୍ଠେ ଶ୍ରୀରାମ  ପୁଚ୍ଛିଲେ ଗୁରୁଙ୍କୁ
କହ କେଉଁ ପ୍ରକାରେ
ଏପରି ଅଜ୍ଞାତ  ଦୋଷୁ ମୁକ୍ତ ହେବ
ନହେଲ ନୋହିବ କାରେ ॥ ୮୨ ॥

ଭୁବନକୁ ବର୍ଷେ  ଚଉଦ ବରଷ
କଲେ ତୁମ୍ଭେ ବନବାସ
ରଘୁବଂଶ ଧରି  ଏଡେଧା ବଳକି
ନ ରହିବ ତଳେ ଦୋଷ ॥ ୮୩ ॥

ବଧିର ବଧାନ  କେ କରିବ ଆନ
ଘଟିବ ନଷ୍ଟେ ଜୀବନେ
ବଶିଷ୍ଠ ମହର୍ଷି  କହିଲେ ଶ୍ରୀରାମ
ଲଗି ଥାଅ ତା ଧ୍ୟାନେ ॥ ୮୪ ॥

ଏହି ଅବସରେ କୈକେୟୀଙ୍କ ଭ୍ରାତା
ଉପସ୍ଥ ଅଯୋଧ୍ୟା ପୁରେ
ଭରତ, ଶତ୍ରୁଘ୍ନ ନେଲେ ନିଜ ଦେଶେ
ବୁଲି ଆସିବାକୁ ଥରେ ॥ ୮୫ ॥

ଦେବଗଣ ଏଣେ ବିସ୍ମର କରନ୍ତି
ରାମରୂପୀ ନାରାୟଣ
ସୀତା ରୂପୀ ମହା- ଲକ୍ଷ୍ମୀଙ୍କ ବନ୍ଧନେ
ରହିଲେ ବାନ୍ଧି ହୋଇଣ ॥ ୮୬ ॥

ପୃଥିବୀ ମାତା ଯେ ସହି ନ ପାରଇ
ଦୁର୍ଦ୍ଦାନ୍ତ ରାବଣ ତାଡ଼
ଦେବ କୁଟେ ଦଣ୍ଡ- ରଥ ବଡ଼ଙ୍କତ
କରାଇବା ବେଳ ଆଉ ॥ ୮୭ ॥

ମନେ ମନେ ଦଣ୍ଡ- ରଥ ନରବର
କରିଲେ ଶ୍ରେଷ୍ଠ ନିଷ୍ପତ୍ତି
ମୋ' ପୁତ୍ର ଶ୍ରୀରାମ ସୁଚରିତ୍ରବନ୍ତ
ସଚ୍ଚେ ଅବା ବୃଦ୍ଧତ୍ୱ ॥ ୮୮ ॥

ସାଗର ସମାନ ଅଟଇ ଗାମ୍ଭୀର୍ଯ୍ୟ
ତେଜ ଗୁଣେ ବୈଶ୍ୱାନର
ଧୈର୍ଯ୍ୟ ଗୁଣେ ସେହୁ ମେରୁ ସମକକ୍ଷ
ଧରଣୀ ସମ ସୁସାର ॥ ୮୯ ॥

ଭାଳେ ଅବା ସେନ୍ତ  ମନେ ରଖି ଥିବେ
ଦଶରଥ ନରପତି
କୈକେୟୀ ପୁତ୍ରକୁ  ରାଜା କରିବାକୁ
ଆଗୁଁ ଦେବା ପ୍ରତିଶ୍ରୁତି ॥ ୯୫ ॥

ନ ଚାହୁ ଏ ଛଣି  ନ ମୁଦନ୍ତୁ ଶଣୀ
ନୋହୁ ରାଜା ରଘୁମଣି
ରାମ ଥାଉ ବନେ  ପିବେ କେଉଁ ପରି
ଭରିଲେ ଦେବେ ଛଳେଣି ॥ ୯୬ ॥

ମନ୍ଥରା ବୋଲି ଯେ  ଅଷ୍ଟବାଙ୍କୀ କୁଜା
ଜନ୍ମି ଥିଲା ଦେବ କୂଟେ
କେକୟ ନଗରୁ  ଆସି ଦାସୀ ପଣେ
ଥିଲା କୈକେୟୀ ନିକଟେ ॥ ୯୭ ॥

'ଖଳ' ଓ 'ଦୁର୍ବଳ'  ଦେବ ଦୂତ ଦ୍ୱୟ
ମାୟାବଳେ ଆସି ଖରେ
ଅନ୍ତଃପ୍ରେରିତ ହୋଇ  ରହିଲେ ମନ୍ଥରା
ଦଶରଥଙ୍କ ଦେହରେ ॥ ୯୮ ॥

ନାନା ବାଦ୍ୟ ନାଦ  ଗହଳ ଚହଳ
ସଭିଙ୍କ ମୁଖେ ହରଷ
ଲୁଟିଲା ମନ୍ଥରା  ହୃଦ ଭରିଗଲା
ମୁଣ୍ଡେ ପଡ଼ିଲା କୁଲକ୍ଷଣ ॥ ୯୯ ॥

କାଲ କେଉଁ ଘଡ଼ି ଆରମ୍ଭ କରିବ
ସ୍ଥିର ମନେ ଚିନ୍ତା କରି
କଇକେୟୀ ପାଟଣି ଚଳିଲୁ ବୁଦ୍ଧିରେ
କହିଲୁ ଛଳନା କରି ॥ ୧୦୦ ॥

ବାସ୍ତବତା ତୋର ନ ଗଲୁ କୈକେୟୀ
ନ ଜାଣିଲୁ ଭଲ ମନ୍ଦ
ସର୍ବନାଶ ଆସି ଉପସ୍ଥିତ ହେଲା
ଗଲୁ ତୋ' ସୁଖ ସ୍ୱାଚ୍ଛନ୍ଦ୍ୟ ॥ ୧୦୧ ॥

ମାତୃଜାଳପ୍ରୁ ପ୍ରେଷି ଭରତକୁ
ଦଶରଥ ନରପତି
ଗୁପତେ ରାମକୁ ରାଜା କରିବାକୁ
କର ଅନ୍ତ ଦୁର୍ମତି ॥ ୧୦୨ ॥

ପ୍ରିୟ ରାମ ମୋର ରାଜା ହେବ ବୋଲି
ଶୁଣି ରାଣୀ କଇକେୟୀ
ବହୁ ମୂଲ୍ୟ ହାର କାଢ଼ି ମନ୍ଥରାର
ଗଳାରେ ଦେଲେ ଲମ୍ବାଇ ॥ ୧୦୩ ॥

ଅଗ୍ନିଭୂତ ହୋଇ ମନକେ ମନ୍ଥରା
କିଛି କ୍ଷଣ ରହିଗଲା
ବକ୍ରିତ ବଦନେ କାଢ଼ି ସେ ହାରକୁ
କ୍ରୋଧରେ ପୋପାଡ଼ି ଦେଲା ॥ ୧୦୪ ॥

ଯତ ଶାସ୍ତ୍ର ଧର୍ମ— ଭକ୍ତେ ମୋର ପୁତ୍ର
ଅଟଇ ଅତି ପ୍ରବୀଣ
ଦେଶ କାଳ. ପାତ୍ର ଜାଣି କାର୍ଯ୍ୟ କରେ
ରଖି ମାନ ଅଭିମାନ ॥ ୯୦ ॥

ଏପରି ସୁପୁତ୍ରେ ରାଜ୍ୟ ଭାର ଦେଇ
ବିଶ୍ରାମ ନେବି ଏଥର
ଏ ବୃଦ୍ଧ ବୟସେ ଅଯଥାରେ ଆଉ
ହେବି କାହିଁ ହରବର ॥ ୯୧ ॥

ଭରତଙ୍କ ଠାରୁ ରାମଙ୍କୁ ଅଧିକ
ସ୍ନେହ କରେ ମୋ' କୈକେୟୀ
ସନ୍ତୁଷ୍ଟ କରିବ ତାଙ୍କୁ ସମ୍ବାଧିତେ
ରାମେ ରାଜ୍ୟ ଭାର ଦେଇ ॥ ୯୨ ॥

ବାଜିବ ଦୁନ୍ଦୁଭି ସାରା ରାଇଜରେ
ନାନା ଦେଶେ ଗଲେ ଖବର
ଜାଣି ଶେଷେ ରାଜା ହେବେ ରାମଚନ୍ଦ୍ର
ମଣ୍ଡିବେ ଅଯୋଧ୍ୟା ପୁର ॥ ୯୩ ॥

ଆନନ୍ଦ ଲହରୀ ଖେଳିବ ରାଜ୍ୟରେ
ବର୍ଣ୍ଣିବେ ପାରିବ ତାହା
କେକୟ ରାଜାଙ୍କୁ ଏ ଶୁଭ ସଂବାଦ
ଦେଲେ ନାହିଁ ନରନାଥ ॥ ୯୪ ॥

ନାହିଁ ହେଲା ହେତ ଜ୍ଞାନ ତୋ କୈକେୟୀ
ବିଷକୁ ଅମୃତ ମଣୁ
ଗଲା ଚୁପିଲାଣି କାଳ ସର୍ପ ଆସି
ଫୁଲ ହାରେ ତାକୁ ଗଣୁ ॥ ୧୦୫ ॥
ରାଜମାତା ହେବ କୌଶଲ୍ୟା ବାଳକ
ସୀତା ହେବ ରାଜ ରାଣୀ
ଖଟାଇବ ତୋତେ ପୁତ୍ର ବଧୂ ସହ
ଯେସନେ ତା' ସ୍ୱକରାଣୀ ॥ ୧୦୬ ॥
ସରୋଷେ କୈକେୟୀ କହିଲେ ବୁଝଲେ
ଶତ ଜନ୍ମ ପାପ ବଳେ
ହୋଇଛୁ ଏପରି କୁପ ବର୍ଣ୍ଣ ତୋର
ପାଣୋର ପକାଇ ଦେଲେ ॥ ୧୦୭ ॥
ଆଉ ବାରେ ଯଦ କହିବୁ ଏପରି
ଖୋଲିବୁ ତୋ ବାକ୍ ପାଟି
ଉପଯୁକ୍ତ ଶାସ୍ତି ଲଭିବୁ ନିଶ୍ଚିତେ
ଜହ୍ୱା ତୋର ଦେବ କାଟି ॥ ୧୦୮ ॥
ବଳଙ୍କ ବଞ୍ଚନା ସଖି ଶିରୋମଣି
କୈକେୟୀ ଙ୍କ ଧ୍ୱନି ଗୀରେ
ସକଳ ଦୈବତ ମୁଣ୍ଡ ଘୂରିଗଲା
ବଜ୍ରାଘାତ ଯଥା ଶିରେ ॥ ୧୦୯ ॥

ଅର୍ପିଣ ମାନସେ ବାଳ୍ୟ ଦେବୀ ପ୍ରାଣେ
ଚଳିଲେ ସର୍ବ ଦେବତା
ଗର୍ଜିଲେ ମାତା ଗୋ ଦୟା କର ବାରେ
ଦୂର କର ଆମ୍ଭ ବ୍ୟଥା ॥ ୧୧୦ ॥

ରାମ ସ୍ୱୟଂ ବସ୍ତୁ ଜନ୍ମ ଲଭନ୍ତି
ଲଙ୍କା ରାବଣ ନିଧନେ
କଇକେୟୀ କଣ୍ଠେ ବଜେ କର ତୁମ୍ଭେ
ଯିବାକୁ ସେ ଘୋର ବନେ ॥ ୧୧୧ ॥

ଶୁଣି ବା ନଶୁଣି ମନା କଲେ ଦେବୀ
ନ କରିବେ ସେ ଏପରି
ବିଦ୍ୟା, ବୁଦ୍ଧି ଦାତ୍ରୀ ଅଟନ୍ତି ସେ ମାତ୍ର
ନୁହନ୍ତି ଅନଷ୍ଟକାରୀ ॥ ୧୧୨ ॥

ତ୍ରିଭୁବନ ହିତେ ଦେବଙ୍କ ଆରତେ
ଶେଷେ ହୋଇଲେ ସେ ରାଜି
ଦୂର କଲେ ସ୍ନେହ ସେନେହ ମମତା
କୈକେୟୀ କଣ୍ଠେ ବିରାଜି ॥ ୧୧୩ ॥

ମଦ୍ୟପ ଯେପରି ମଦ୍ୟ ପାନ ପରେ
ହରାଏ ତା'ର ନିଜତ୍ୱ
କଇକେୟୀ କଣ୍ଠେ ବାକ୍ୟଦେବୀ ବସି
କଲେ ତାଙ୍କୁ କଳଙ୍କିତ ॥ ୧୧୪ ॥

ଆସନ୍ତି ଦଶାନନା ଅହମିକା ଘନା
କୈକେୟୀରେ ମନ୍ଦ ବସ୍ତ
ଜନ୍ମଥିଲା କେତେ ଦାରୁଣ ଲାଞ୍ଛନା
ବଚନେ ନ ହେବ ଭଙ୍ଗ ।। ୧୧୫ ।।

ଶପଥ ନେଲେ ସେ ମନ୍ଥରା ବଚନ
ନ କରିବେ କେବେ ଆନ
ଯାହା ସେ କହିବ କରିବେ ନିଶ୍ଚିତେ
ଜନମଧ୍ୟେ ଧନ ଜନ ।। ୧୧୬ ।।

ପ୍ରାଣ ତୁଲ୍ୟ ନୃପ କହୁଥିଲେ ଯେଉଁ
ଦଶରଥଙ୍କୁ କୈକେୟୀ
କହିଲେ ତାହାଙ୍କୁ ନାନା କଟୁ ବାକ୍ୟ
ସର୍ପିଣୀ ପ୍ରାୟେ ହୋଇ ।। ୧୧୭ ।।

ପୂର୍ବେ ବାକ ଥିବା କର ପୂର୍ଣ୍ଣ ମୋର
ଦଣ୍ଡ ରାଜନ ବନ୍ଧନେ
ଭରତ ନୃପତ ହୋଇ ଅଯୋଧ୍ୟାରେ
ରାମ ଯାଉ ଘୋର ବନେ ।। ୧୧୮ ।।

କୈକେୟୀଙ୍କ କଣ୍ଠେ ବସି ସରସ୍ୱତୀ
ମାଗିଲେ ଚଉଦ ବର୍ଷ
କ୍ଷୀର ସିନ୍ଧୁ ଘଟରେ ଦେବଙ୍କୁ ଯେପରି
କହିଥିଲେ ରମାକ୍ଷଣ ।। ୧୧୯ ।।

କନ୍ୟାଗାଣେ ମନ୍ତ୍ର— ହୃଷ୍ଟ ଗ୍ରହ୍ମିଁ ଗୁହ୍ମିଁ
ଯୋଗ୍ୟ ଭଙ୍ଗିର ଯେସନେ
ଦଶରଥ ରାଜା ଧରଣୀ ପୃଷ୍ଠରେ
ଟଳି ପଡ଼ିଲେ ତେସନେ ॥ ୧୨୦ ॥
କଛି କ୍ଷଣ ପରେ ଜ୍ଞାନ ଲଭ୍ୟ ପୁଣି
କହିଲେ ମୋ' ପ୍ରାଣ ସହି
ଏପରି ଅପ୍ରିୟ କଥା କେଉଁ ପରି
ବଦନେ ପାରୁଛୁ କହି ॥ ୧୨୧ ॥
ଯେଉଁ ରାମକୁ ତୁ ଦଣ୍ଡେ ନ ଦେଖିଲେ
ବାଉଳୀ ପରାଏ ହେଉ
ଚିନ୍ତ ମୁଁ କେବଳ ରାମ ମୋ' ଜୀବନ
ସଦାବେଳେ କହୁଥାଉ ॥ ୧୨୨ ॥
ମୋ' ଜୀବ ଜୀବନ ସେହି ପ୍ରିୟ ରାମ
ନ ପାଉ ଘୋର କାନନେ
ଚଉଦ ଏ ବର୍ଷ କଣ ଅପରାଧେ
ଯିବା ନ କହ ଜଗତେ ॥ ୧୨୩ ॥
ଗ୍ରହିଲେ ତୁ ଆଜ କୋଷଳକୁ ରାଜା
କରି ଦେବ ମୁଁ ଅଚିରେ
ଅବା ରାଜପୁତ୍ର ହିଷ୍ଟକ ହେବା
ଇଚ୍ଛା ଅଛି କହ ବାରେ ॥ ୧୨୪ ॥

ଯାହା ତୁ' କହିବୁ — ତାହା ମୁଁ କରିବ
ସତ୍ୟ ସତ୍ୟ ମୋର ବାଣୀ
ରାମ ବନବାସ — କଥା କହି ଆଜ
ନ ଦଅ ମରମ ହାଣି ॥ ୧୨୫ ॥

ଏ କଥା ଶ୍ରବଣେ — ରାଣୀ କଇକେୟୀ
କହିଲେ ହେ ନର ତ୍ରାଣ
ମାତୁଳାଳୟରେ — ମୋ' ପୁତ୍ର ଭରତ
ଅଛି ଭିକ୍ଷୁକ ସମାନ ॥ ୧୨୬ ॥

ଅଯୋଧ୍ୟା ନରେଶ — କରି ତାକୁ ତୁମ୍ଭେ
ରଖ ଏ ସତ୍ୟ ବଚନ
ରାଜା ହୋଇ ରାମ — ନ ରହୁ ଏ ଦେଶେ
ଯିବ ଗହନ ବିପିନ ॥ ୧୨୭ ॥

କହିଲେ ସେ ପୁଣି — ହିମ ଶିଳା ଖଣ୍ଡ
ଅଗ୍ନି ହୋଇପାରେ ଜାତ
ଶୁଖି ଯାଇ ପାରେ — ବାରାନିଧି ବାରି
ଫୁଟୁ ମର୍ତ୍ତ୍ୟେ ପାରିଜାତ ॥ ୧୨୮ ॥

ପଶ୍ଚିମ ଗଗନେ — ଉଦେ ହେଲେ ଭାନୁ
ଶୀଖଣ୍ଡ ହିମେ ନଳନ
ବର ଦୁଇ ମୋର — ନେବ ସୁନିଶ୍ଚିତେ
ନୋହିବ କଦାପି ଆନ ॥ ୧୨୯ ॥

କୈକେୟୀ ବଚନ ଶୁଣି ସେ ରାଜନ
ବସ୍ମରନ୍ତି ମନେ ମନେ
ଅର୍ଦ୍ଧଂ ମୂକ ଶାପ ଫଳବ ନକଟେ
ପ୍ରାଣ ପ୍ରିୟ ରାମ ବନେ ॥ ୧୩୦ ॥

ପିତା ସତ୍ୟ ମାତା . ନଦାରୁଣ ବାଣୀ
ଶୁଣି ଜାନକୀ ରମଣ
ଭାବଲେ ବମାତା ଦୋଷ ନାହିଁ ଏଥି
ଏ ସବୁ ଧାତା ଭିଆଣ ॥ ୨୩୧ ॥

ସବୁ ଗୁଣ ଯୁକ୍ତା ଉତ୍ତମ ବନତା
ଧର୍ମ ଶାସ୍ତ୍ରେ ସୁପଣ୍ଡିତା
ଏ ମହୀ ମଣ୍ଡଳେ ନ ମିଳବେ କେବେ
କୈକେୟୀ ସମ ବମାତା ॥ ୧୩୨ ॥

କୌଶଲ୍ୟାଙ୍କ ଠାରୁ ଅତାଧିକ ସ୍ନେହ
ରଖିଥାନ୍ତି ସେ ମୋ' ଠାରେ
କାହା ପ୍ରତ କେବେ ହିଂସା ଭାବ ତାଙ୍କ
ନଥିଲା ମୋ' ଜ୍ଞାତସାରେ ॥ ୧୩୩ ॥

ଆବାଲ୍ୟରୁ ମୋର ନେଇଥିଲେ ସେହି
ଲାଳନ ପାଳନ ଭାର
ମୋ' ଦେହରେ ପୁଷ୍ପ ଘଟନେ ଭାବନ୍ତି
ଛିରେ ତାଙ୍କର ପଥର ॥ ୧୩୪ ॥

ଆଜ ଯେବେ ସେହି  ଘଟାଇ ପାରିଲେ
ଏହିପରି ଅଘଟନ
ତ୍ରିଭୁବନ ହିତେ  ବିଧାତା ଉଦ୍ଦେଶ
ନାହିଁ ଆଉ କିଛି ଅନ୍ୟ ॥ ୧୩୫ ॥

ବଶିଷ୍ଠ ମହର୍ଷି  ଯୋଗ ଧ୍ୟାନେ ବସି
ଜାଣିଲେ ଗୁପ୍ତ ରହସ୍ୟ
ଷଷ୍ଠ ଅବତାର  ଶ୍ରୀରାମ ଜନମ
ସାର୍ଥକ ହେବ ଅବଶ୍ୟ ॥ ୧୩୬ ॥

ଶ୍ରୀରାମ, ଲକ୍ଷ୍ମଣ  ସଙ୍ଗେ ସୀତା ସତୀ
ଚଳିଲେ ଘୋର କାନନେ
ହା ହା କାର ଧ୍ୱନି  ଖେଳିଲା ରାଜ୍ୟରେ
ଶ୍ରୀରାମ ରାମ ରୋଦନେ ॥ ୧୩୭ ॥

ରାମ ବନବାସ  ଜାଣି ଦଶରଥ
ଧଡ଼ ହନେ ଛଡ଼ ବାଉ
ଶ୍ରୀରାମ, ଶ୍ରୀରାମ  କରି ଉଚ୍ଚାରଣ
ଚଳିଲେ ସରଗ ପୁର ॥ ୧୩୮ ॥

ଦେବ କାର୍ଯ୍ୟ ଶେଷେ  * ବାକ୍ୟଦେବୀ ତୋଷେ
କୈକେୟୀ କଣ୍ଠ ବରଜ
ଗମିଲେ ସାନନ୍ଦେ  ଅମର ଭୁବନେ
ବନ୍ଧୁ ଜନ ହିତ ସାଧି ॥ ୧୩୯ ॥

---

* ବାକ୍ୟଦେବୀ–ସରସ୍ୱତୀ

ଯଥା ଗ୍ରସ୍ତ ନର — ଯଥା ଶେଷ କାଳେ
ଲଭେ ହିତା ହିତ ଜ୍ଞାନ
ସେହିପରି * ବାଣୀ — ଅନ୍ତର୍ହିତେ ରାଣୀ
ଚେତିଲେ ନିଜ କୁକର୍ମ ॥ ୧୪୦ ॥

ନ ଭଲି ନ ଭଲି — ଗଣ୍ଡ ହତ୍ୟା ହେଲି
ନନ୍ଦିତା ହେଲି ଜଗତେ
କି ବୋଲୁଥିବେ ସେ — ଦେବ ଦାନବାଦ
ଅନ୍ଧ ନର୍କ ଥୁଆ ମୋତେ ॥ ୧୪୧ ॥

ଭୂତ କି ପିଶାଚ — ମୋ' ମୁଣ୍ଡରେ ବସି
କରାଇଲା ଏତେ କର୍ମ
କାହା ଅଭିଶାପେ — କେଉଁ ପାପ ବଳେ
ଅଯୋଧ୍ୟା ଭଳି ମନ୍ଦିର ॥ ୧୪୨ ॥

ଶଶୀ ଯେଉଁ ପରି — କଳଙ୍କ ଧାରୁଛି
ନିର୍ମଳ ଚନ୍ଦ୍ର ଅଙ୍ଗରେ
ମୁହିଁ ସେହିପରି — କଳଙ୍କିତ କଲି
ସୂର୍ଯ୍ୟ ବଂଶ ଆକାଶରେ ॥ ୧୪୩ ॥

କୁଳ କଳଙ୍କିନୀ — ପାଷାଣୀ ପାପିନୀ
ଧିକ ଧିକ ମୋ' ଜନମ
ରାମ ଦ୍ରୋହୀ ହୋଇ — ରହିଛି ଏ ପ୍ରାଣ
ନ ନେଉଛି କାଳ ଯମ ॥ ୧୪୪ ॥

---

* ବାଣୀ—ସରସ୍ୱତୀ

ବିଷକୁ ଅମୃତ ବୋଲି ଜ୍ଞାନ କଲି
ନ ଜାଣିଲି ଭଲ ମନ୍ଦ
ଭୁଲି ଚନ୍ଦ୍ରମାକୁ ବନେ ଛଡାଇଲି
ରଚି ନାନା ମାୟା ଫାନ୍ଦ ॥ ୧୪୫ ॥

ନାନା ଦୃଷ୍ଟାନ୍ତରେ ବିଷ ଓ ଅମୃତ
ଲକ୍ଷ୍ୟ ଦ୍ୱୟ ହସ୍ତେ ଧରି
ବିସ୍ତରିଲେ ରାମ ମୋ ନେତ୍ର ପିତୁଳା
ଫେରିଲେ ଅଯୋଧ୍ୟା ପୁରୀ ॥ ୧୪୬ ॥

ମୋ' ପାଶେ ନଆସି ଯାଇ ସେ ପ୍ରଥମେ
ଭଜିଲେ ପାଶେ ଶିବ
ବିଷ ଲକ୍ଷ୍ୟ ଭକ୍ତି ଦର୍ପଣ ଦେଖାଉ
ସାକ୍ଷୀ ରଖି ବିଷ୍ଣୁ ଶିବ ॥ ୧୪୭ ॥

ବିପିନୁଁ ବିପିନେ ବୁଲି ନାନା ସ୍ଥାନେ
ଶେଷେ ପଞ୍ଚବଟୀ ବନେ
ନିବସିଲେ ସୀତା, ଶ୍ରୀରାମ, ଲକ୍ଷ୍ମଣ
ଶାନ୍ତପ୍ରଦ ସ୍ୱଚ୍ଛ ମନେ ॥ ୧୪୮ ॥

ସୀତା ହେରି କଲି ରାକ୍ଷସ ରାବଣ
ସେ ବନୁଁ ଅନ୍ତ ଘଟନେ
ଲୁଚାଇ ରଖିଲି ଲଙ୍କା ଗଡେ ତାର
ନନ୍ଦନ ଅଶୋକ ବନେ ॥ ୧୪୯ ॥

ଯେ ନବଗ୍ରହଙ୍କୁ ପାବଚ୍ଛ ରୂପରେ
ରଖି ସିଂହାସନ ତଳେ
ଗୋ, ବ୍ରାହ୍ମଣ ବଧ ନାସ୍ତ ଧରଷଣ
କରୁଥିଲା ଅକାତରେ ।। ୧୫୦ ।।

ଚଉଦ ଗଣ୍ଡାରେ ସେହୁ ମୂଢ଼ ମ[illegible]
ରାବଣ ସବଂଶେ ନାଶି
ଭୂ - ଭାର ଉଶ୍ବାସ କଲେ ନାରାୟଣ
ନର ରୂପ ଧରକାଣି ।। ୧୫୧ ।।

ଆଶ୍ବସ୍ତ ଲଭିଲେ ଦେବ ଦାନବାଦ
ହସିଲା ଧରଣୀ ରାଣୀ
ଅତ୍ୟାଚ୍ଛସ୍ବ ଦୁର୍- ବୃଷ୍ଟ ମହା ପାପୀ
ରାବଣ ନିଧନ ଶୁଣି ।। ୧୫୨ ।।

ସୀତାଙ୍କୁ ଉଦ୍ଧାର କରି ରଘୁବୀର
ଫେରିଲେ ଅଯୋଧ୍ୟା ପୁରରେ
ଅଦ୍ଭୁତ ଦେଖିଲେ ବୃଦ୍ଧ ରଙ୍କଜନ୍ତୁ
ବିମାତା ଗବାକ୍ଷ ଦ୍ୱାରେ ।। ୧୫୩ ।।

ନେତ୍ର ବନ୍ଧୁ ଅଶ୍ରୁ ଲୁହ ଧାର ଧାର
ମୁଖ ଭରା ବିଷାଦରେ
ନେତ୍ୟାନ୍ତ ସ୍ଥାନ ହରେ ଆହ୍ଲାଦ ମସ୍ତକ
କଣ୍ଠୁ ରାମ ରାମ ସ୍ୱରେ ।। ୧୫୪ ।।

ଅନ୍ତର୍ଯ୍ୟାମୀ ରାମ ଅନ୍ତର ବେଦନା
ଜାଣିଲେ ସୁମାତାଙ୍କର
ଅବିଳମ୍ବେ ଯାଇ ଭେଟିଲେ ଭୂ-ତଳେ
ଧରି ତାଙ୍କର ଉପୁର ॥ ୧୫୫ ॥

ଆହା କି ବିମଳ ଆହା କି ନିର୍ମଳ
ସୁମାତା - ପୁତ୍ର ମିଳନ
ମନ୍ଦାକିନୀ ଧାର ସତ ପୁଷ୍ପ ବୃଷ୍ଟି
କଲେ ସର୍ବ ସୁରଗଣ ॥ ୧୫୬ ॥

ଚଉଦ ବର୍ଷର ବିରହ ବେଦନା
ନିମିଷକେ ଲିଭି ଗଲା
ମୋ' ପୁତ୍ର, ମୋ' ରାମ ମୋ' ପ୍ରିୟ ସୁମାତା
ଧ୍ୱନି ପ୍ରକମ୍ପିତ ହେଲା ॥ ୧୫୭ ॥

ପ୍ରିୟ ରାମ ହସ୍ତେ ସେ ଅମୃତ ଲଡୁ
ଦେଲେ ସୁମାତା କୈକେୟୀ
ଭକ୍ତ ଲଡୁ ନେଇ ହସ୍ତେ ଗୁଣ୍ଡ କରି
ବୃକ୍ଷରେ ଦେଲେ ବିଞ୍ଚି ॥ ୧୫୮ ॥

କ୍ଷୁଦ୍ର ଜୀବ ଯେତେ ଥିଲେ ସେ ବୃକ୍ଷରେ
ଖାଇ ହରାଇଲେ ପ୍ରାଣ
ଲୁଟିଲା ପ୍ରକୃତି ନୂହେ କଇକେୟୀ
ଦେଲେ ଦୃଷ୍ଟାନ୍ତ ପ୍ରମାଣ ॥ ୧୫୯ ॥

କୈକେୟୀ ସନ୍ତାପ ଦେଖି ରଘୁ ସାଇଁ
କଣ୍ଠରେ ପ୍ରବୋଧି ଗୀର
ନଜର ବମାଚା ଏ ଗୁର କଥାକୁ
ଶୋଚନା କଲେ ମାତର ॥ ୧୨୦ ॥
ସକଳ ନଧନେ ଜନ୍ମ ଦେଲେ ମୋତେ
ଏ ମର୍ତ୍ତ୍ୟରେ ଯେଉଁ ଧାତା
ସେହି ମଧ୍ୟ ମୋତେ ଦେଲେ ଦୟାକରି
ଭୂମର ଗୁରୁ ସମାତା ॥ ୧୨୧ ॥
ଝୁଆ ଦଣ୍ଡ କରି ମନ୍ଦର ପର୍ବତ
ଦେବ ଦାନବ ଯେପରି
ମନ୍ଥନ କରିଲେ ଅତଳ ସାଗର
ଧନ ରତ୍ନ ଆଶା କରି ॥ ୧୨୨ ॥
ବିଷ ଓ ପୀୟୂଷ ଜାତ ହେଲେ ତହୁଁ
ପୀୟୂଷ ନେଲେ ଦେବତା
ବିଷ କ କଣ୍ଠରେ ବ୍ରହ୍ମା, ବିଷ୍ଣୁ, ଶିବ,
ଭଲେ ମନେ ଗୁ ସ୍ତୁ ଭଲା ॥ ୧୨୩ ॥
ତ୍ରିଭୁବନ ରକ୍ଷା ଭଟଳ ଶେଷେ ଶିବ
କରି ହଳାହଳ ପାନ
ନୀଳକଣ୍ଠ ନାମେ ସୁବିଦିତ ଜଗତେ
ପଞ୍ଚାନନ, ତ୍ରିଲୋଚନ ॥ ୧୨୪ ॥

ଅସୀମ * ବିରହେ　　　　　ମନ୍ଦର ପର୍ବତ
　　ଭରି ସେପରି ବିମାତା
ସାଗର ସ୍ୱରୂପ　　　　　ଭରତ ହୃଦୟ
　　ମନ୍ଥିଲେ ଜଗତ କର୍ତ୍ତା ॥ ୧୭୫ ॥
ସାଗର ମନ୍ଥନୁ　　　　　ବାହାରିଲା ପରି
　　ବିଷ ସହିତ ପୀୟୂଷ
ବିରହେ ସାଗର　　　　　ମନ୍ଥନୁ ଉପୁଜି
　　ହେଲା ପ୍ରେମ ଅପଯଶ ॥ ୧୭୬ ॥
ଶିବ ସମ ତୁମ୍ଭେ　　　　　ସମ ଦଶା ଭୋଗି
　　ନେଲ ଯଶ ଅପଯଶେ
ପ୍ରେମାମୃତ ପାନ　　　　　କଲେ ଦେବଗଣ
　　ଦଶାନନର ବିନାଶେ ॥ ୧୭୭ ॥
ତୁମ୍ଭ ବିନା ମୋର　　　　　ଜନମ ବର୍ତ୍ତିଛେ
　　ହୋଇଥାନ୍ତା ଅକାରଣ

---

* ବିରହ – ଦୁଃଖ

ଅସୀମ ବିରହକୁ ମନ୍ଦର ପର୍ବତ ରୂପୀ ଖୁଆଦଣ୍ଡ କରି ଭ୍ରାତୃ ପ୍ରେମୀ ଭରତଙ୍କ କ୍ଷୀରସିନ୍ଧୁ ରୂପୀ ହୃଦୟକୁ ସ୍ୱୟଂ ବିଷ୍ଣୁଙ୍କ ଦ୍ୱାରା ମନ୍ଥନ ।

ଅଯୋଧ୍ୟାପୁରୀ ଭୂମେ ହେ ମୋର ଜନନୀ !
ରାବଣ ବଧ କାରଣ ॥ ୧୬୮ ॥

ଧରଲ ଭୂମିର ପାତିବ୍ରତ୍ୟ ଧର୍ମ
ଧରଲ ରାମ - ମମତା
ଧରଲ ଭୂମିର ଉଦାରତା ମାତା
ଧରଲ ମହାମାନ୍ୟତା ॥ ୧୬୯ ॥

ଦଶରଥ ସୁତ ଗୋଲକ - ବହାଶ୍ରୀ
ମର୍ଯ୍ୟାଦା ପୁରୁଷୋତ୍ତମ
କୈକେୟୀଙ୍କ ଦୁଃଖ କଲେ ବିମୋଚନ
କଡ଼ ଗୁଡ଼ ଚନ୍ଦ୍ର ମାନ ॥ ୧୭୦ ॥

ଭକତ ବତ୍ସଳ ଶରଣ ରକ୍ଷଣ
ଜଗଦୀଶ୍ୱର ଶାନ୍ତି ଦାତା
ଧନ କରିଗଲେ ମୁକ୍ତି ଦିଅ ପ୍ରଭୁ
ସ୍ୱର୍ଗୀୟ ମୋ' ପିତା ମାତା ॥ ୧୭୦ ॥

ପଢ଼ିବା ଶୁଣିବା ଜନେ ମିଳୁ ପ୍ରଭୁ
ସାଯୁଜ୍ୟ ମୁକତି ପଥ
ଜୟ ଜୟ ଜୟ କୌଶଲ୍ୟା ନନ୍ଦନ
ଜୟ ଜୟ ସୀତାକାନ୍ତ ॥ ୧୭୧ ॥

କଳକଣ୍ଠୀ ସମ ମଧୁଭାଷୀ ହୁଅ
ଏ ଦେଶ ଲଳନା ଗଣ
ଦେଶ ଓ ଜାତିର ଗୌରବ ବଢାଅ
ଏକ ମାତ୍ର ନିବେଦନ ॥ ୧୭୩ ॥

— ସମାପ୍ତ —

ମୁଦ୍ରଣ—ଜଗନ୍ନାଥ ପ୍ରିଣ୍ଟିଂ ପ୍ରେସ୍, ହିଲ୍‌ପାଟଣା
ବ୍ରହ୍ମପୁର



ମାତା ରାମୋ ମତ୍ ପିତା ରାମଚନ୍ଦ୍ରଃ

ସ୍ୱାମୀ ରାମୋ ମତ୍ ସଖା ରାମଚନ୍ଦ୍ରଃ ।।

ସର୍ବସ୍ୱଂ ମେ ରାମଚନ୍ଦ୍ର ଦୟାଳୁ-

ନାନ୍ୟ ଜାନେ ନୈବ ଜାନେ ନ ଜାନେ ।।

"ଶ୍ରୀରାମଚନ୍ଦ୍ର ଚରଣୌ ମନସା ସ୍ମରାମି

ଶ୍ରୀରାମଚନ୍ଦ୍ର ଚରଣୌ ବଚସା ଗୃଣାମି

ଶ୍ରୀରାମଚନ୍ଦ୍ର ଚରଣୌ ଶିରସା ନମାମି

ଶ୍ରୀରାମଚନ୍ଦ୍ର ଚରଣୌ ଶରଣଂ ପ୍ରପଦ୍ୟେ"

"ରାମ ରାମେତି ରାମେତି ରମେ ରାମେ ମନୋରମେ

ସହସ୍ର ନାମ ତତ୍ତୁଲ୍ୟଂ ରାମ ନାମ ବରାନନେ" ।

କୈକେୟ ରାଜନନ୍ଦିନ୍ୟୈ ସୌଦର୍ଯ୍ୟା ବୀରାଙ୍ଗନାଂ

ସୁପଣ୍ଡିତାମ୍ ଚ ବିବିଧଗୁଣାବିଭୂଷିତା ସର୍ବଜ୍ଞାଂ ସୁଶୀଳାଂ,

ସଯାମ୍ୟତ୍ୟାଗବତୀଂ ଦଶରଥାର୍ଦ୍ଧାଙ୍ଗିନୀଂଚ

ଶ୍ରୀରାମ ମାତୃ ହୃଦୟାଂ ସା ପରମା ପତିବ୍ରତାମ୍,

ସାଧ୍ୱୀଂ ଭରତ ଜନନୀଂ ଚ ପୁର ହିତୈଷିଣୀମ୍

ସତ୍ୟଧର୍ମାନୁରକ୍ତା ସା କୈକେୟୀ ଦେବୀଂ ନମାମିଃ ।

—୦—

# ଶ୍ରୀରାମଙ୍କର ୧୦୮ ନାମ

## ଓ

## ସିଦ୍ଧିଦାୟକ ନାମସ୍ତୋତ୍ର

ଓଁ ଈଶାବାସ୍ୟମିଦଂ ସର୍ବଂ ଯତ୍କିଞ୍ଚଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନମ୍ ।।

ସିଂହସ୍ୟୋପରି ଦତ୍ତଦକ୍ଷଚରଣାଂ ବିଭ୍ରାଜମାନାଂ ଶୁଭଂ ।
ବୀଣାପୁସ୍ତକଖଡ଼୍‌ଗପଙ୍କଜଦଧତୀଂ ଦକ୍ଷୈଃ କରମ୍ଭୋରୁହୈଃ ।।
ଘଣ୍ଟାକାର୍ମୁକ ପଞ୍ଚାଶାସ୍ତ୍ରକଙ୍କନ୍ ବାମୈଃ କରୈର୍ବିଭ୍ରତୀଂ ।
ସିଦ୍ଧେନ୍ତୀଂ ମହିଷଂ ନମାମି ବରଦାଂ ବାଗ୍‌ଦେବତାଂ ଶାରଦାମ୍ ।

### ଶ୍ରୀରାମଚନ୍ଦ୍ରଙ୍କ ବନ୍ଦନା



କର୍ମଯୋଗେଶ୍ୱରଂ ଧୀରଂ ରାମଂ ସତ୍ୟବ୍ରତଂ ବରମ୍ ।
ରକ୍ଷିତାରଂ ଚ ଧର୍ମସ୍ୟ ବନ୍ଦେଽହଂ ପୁରୁଷୋତ୍ତମମ୍ ।।
ଦନ୍ତାରଂ ଭୟବିଘ୍ନାନାଂ ଦାତାରଂ ସୁଖସମ୍ପଦାମ୍ ।
ତ୍ରାତାରଂ ସାଧୁଲୋକାନାଂ ନେତାରଂ ରମମାଶ୍ରୟେ ।।

ଶିବ ପାର୍ବତୀଙ୍କୁ କହିଲେ— 'ସଂସାରରେ ଯେତେ ଲୌକିକ ଓ ବୈଦିକ ଶବ୍ଦ ଅଛି, ସେ ସବୁ ଶ୍ରୀରାମଚନ୍ଦ୍ରଙ୍କର ନାମ ଅଟେ । କିନ୍ତୁ ସହସ୍ର ନାମ ଏହାଠାରୁ ଅଧିକ ଓ ଏହି ୧୦୮ ନାମ ସହସ୍ରନାମଠାରୁ ମଧ୍ୟ ଅଧିକ ଏବଂ ବିଶିଷ୍ଟ ଅଟେ । ବିଷ୍ଣୁଙ୍କର ପ୍ରତ୍ୟେକ ନାମ ସର୍ବ-ବେଦ ଠାରୁ ବିଶିଷ୍ଟ ଅଟେ, କିନ୍ତୁ ଏକାକୀ ରାମ ନାମ ବିଷ୍ଣୁଙ୍କର ହଜାର ନାମଠାରୁ ଅଧିକ ଅଟେ । ରାମ-ନାମ ପାଠ କଲେ ଯେତିକି ଫଳ ମିଳେ, ବେଦର ସମସ୍ତ ମନ୍ତ୍ର ପାଠ କଲେ ସେତିକି ଫଳ ମିଳେ ନାହିଁ । ବର୍ତ୍ତମାନ ତୁମେ ଶ୍ରୀରାମଚନ୍ଦ୍ରଙ୍କର ଏକ ଶହ ଆଠ ନାମ ଶୁଣ—

ଓଁ ଶ୍ରୀରାମୋ ରାମଚନ୍ଦ୍ରଶ୍ଚ ରାମଭଦ୍ରଶ୍ଚ ଶାଶ୍ୱତଃ ।
ରାଜୀବଲୋଚନଃ ଶ୍ରୀମାନ୍ ରାଜେନ୍ଦ୍ରୋ ରଘୁପୁଙ୍ଗବଃ ॥

ଜାନକୀବଲ୍ଲଭୋ ଜୈତ୍ରୋ ଜିତାମିତ୍ରୋ ଜନାର୍ଦ୍ଦନଃ ।
ବିଶ୍ୱାମିତ୍ରପ୍ରିୟୋ ଦାନ୍ତଃ ଶରଣ୍ୟତ୍ରାଣତତ୍ପରଃ ॥

ବାଳିପ୍ରମଥନୋ ବାଗ୍ମୀ ସତ୍ୟବାକ୍ ସତ୍ୟବିକ୍ରମଃ ।
ସତ୍ୟବ୍ରତୋ ବ୍ରତଧରଃ ସଦା ହନୁମଦାଶ୍ରୟଃ ॥

କୌଶଲେୟଃ ଖରଧ୍ୱଂସୀ ବିରାଧବଧପଣ୍ଡିତଃ ।
ବିଭୀଷଣପରିତ୍ରାତା ଦଶଗ୍ରୀବଶିରୋହରଃ ॥

ସପ୍ତତାଳପ୍ରଭେତ୍ତା ଚ ହରକୋଦଣ୍ଡ ଖଣ୍ଡନଃ ।
ଜାମଦଗ୍ନ୍ୟ ମହାଦର୍ପଦଳନସ୍ତାଟକାନ୍ତକୃତ୍ ।

ବେଦାନ୍ତପାରୋ ବେଦାତ୍ମା ଭବବନ୍ଧୈକ ଭେଷଜଃ ।
ଦୂଷଣ ତ୍ରିଶିରୋରିଶ୍ଚ ତ୍ରିମୂର୍ତ୍ତିସ୍ତ୍ରିଗୁଣମୟଃ ॥

ତ୍ରିବିକ୍ରମସ୍ତ୍ରିଲୋକାତ୍ମା ପୁଣ୍ୟଚରିତ୍ରକୀର୍ତ୍ତନଃ ।
ତ୍ରିଲୋକରକ୍ଷକୋ ଧନ୍ୱୀ ଦଣ୍ଡକାରଣ୍ୟ ବାସକୃତ୍ ॥

ଅହଲ୍ୟା ପାବନଶ୍ଚୈବ ପିତୃଭକ୍ତୋ-ବରପ୍ରଦଃ ।
ଜିତେନ୍ଦ୍ରିୟୋ ଜିତକ୍ରୋଧୋ ଜିତଲୋଭୋ ଜଗଦ୍‌ଗୁରୁଃ ॥

ଋକ୍ଷବାନର ସଂଘାତୀ ଚିତ୍ରକୂଟସମାଶ୍ରୟଃ ।
ଜୟନ୍ତତ୍ରାଣବରଦଃ ସୁମିତ୍ରାପୁତ୍ର ସେବିତଃ ॥

ସର୍ବଦେବାଧିଦେବଶ୍ଚ ମୃତବାନରଜୀବନଃ ।
ମାୟାମାରୀଚହନ୍ତା ଚ ମହାଦେବୋ ମହାଭୁଜଃ ॥

ସର୍ବଦେବସ୍ତୁତଃ ସୌମ୍ୟୋ ବ୍ରହ୍ମଣ୍ୟୋ ମୁନିସତ୍ତମଃ ।
ମହାଯୋଗୀ ମହୋଦାରଃ ସୁଗ୍ରୀବେପ୍ସିତରାଜ୍ୟଦଃ ॥

ସର୍ବପୁଣ୍ୟାଧିକଫଳଃ ସ୍ମୃତସର୍ବାଘନାଶନଃ ।
ଆଦିପୁରୁଷୋ ମହାପୁରୁଷଃ ପରମଃ ପୁରୁଷସ୍ତଥା ॥

ପୁଣ୍ୟୋଦୟୋ ମହାସାରଃ ପୁରାଣ ପୁରୁଷୋତ୍ତମଃ ।
ସ୍ମିତବକ୍ତ୍ରୋ ମିତଭାଷୀ ପୂର୍ବଭାଷୀ ଚ ରାଘବଃ ॥

ଅନନ୍ତ ଗୁଣଗମ୍ଭୀରୋ ଧୀରୋଦାତ୍ତଗୁଣୋତ୍ତମଃ ।
ମାୟାମାନୁଷଚାରିତ୍ରୋ ମହାଦେବାଦିପୂଜିତଃ ॥

ସେତୁକୃଜ୍ଜିତ ବାରିଶଃ ସର୍ବତୀର୍ଥମୟୋ ହରିଃ ।
ଶ୍ୟାମାଙ୍ଗଃ ସୁନ୍ଦରଃ ଶୂରଃ ପୀତବାସା ଧନୁର୍ଦ୍ଧରଃ ॥

ସର୍ବଯଜ୍ଞାଧିପୋ ଯଜ୍ୱା ଜରାମରଣ ବର୍ଜିତଃ ॥
ବିଭୀଷଣ ପ୍ରତିଷ୍ଠାତା ସର୍ବାପଗୁଣବର୍ଜିତଃ ॥

ପରମାତ୍ମା ପରଂବ୍ରହ୍ମ ସଚ୍ଚିଦାନନ୍ଦ ବିଗ୍ରହଃ ।
ପରଂ ଜ୍ୟୋତିଃ ପରଂଧାମ ପରାକାଶଃ ପରାତ୍ପରଃ ॥

ପରେଶଃ ପାରଗଃ ପାରଃ ସର୍ବଭୂତାତ୍ମକଃ ଶିବଃ ।
ଇତି ଶ୍ରୀରାମଚନ୍ଦ୍ରସ୍ୟ ନାମ୍ନାମଷ୍ଟୋତ୍ତରଂ ଶତମ ॥

ଗୁହ୍ୟାଦ୍ ଗୁହ୍ୟତରଂ ଦେବି ତବ ସ୍ନେହାତ୍ ପ୍ରକୀର୍ତ୍ତିତମ୍ ॥

[ପଦ୍ମପୁରାଣ, ଉ. ୨୧୮/୨୩-୪୬]



## ଲେଖକଙ୍କର ଅନ୍ୟାନ୍ୟ କୃତି

(୧) ଘରଟି ଆମର ସରଗପୁର (୨) ପୂର୍ଣ୍ଣି ଲେ ପୂର୍ଣ୍ଣ (୩) ପାହିଲା ରତି (୪) ପିଲଙ୍କ ନାନା ବାୟା ଗୀତ (୫) [illegible] [illegible] ତାରତାରିଣୀ (୬) ଅବୁଝା ମନ ଚଉତିଶା (୭) ମହୀୟସୀ କୈକେୟୀ (୮) ତ୍ରିଲୋଚନ - ଶତକ (୯) ବୀର ହନୁମାନ - ଶତକ (୧୦) କରୁଣାନିଧି ଜଣାଣ (୧୧) କରୁଣା ବାରିଧି ଜଣାଣ (୧୨) ସତୀକାନ୍ତ ଜଣାଣ (୧୩) ଅନ୍ତର ବେଦନା (୧୪) ଭରତ ମିଳନ (୧୫) ଆଦର୍ଶ ନାରୀ (୧୬) ଅହଲ୍ୟା ନିସ୍ତାରଣ (୧୭) ସ୍ମୃତି ଚନ୍ଦ୍ରିକା (୧୮) ବୁଢ଼ାଘର ସ୍ମୃତି (୧୯) ବ୍ୟାଘ୍ରଦେବୀ ସ୍ତବ (୨୦) ବିରଞ୍ଚି ନାରାୟଣ ଶତକ (୨୧) ଗୁରୁ ଅ-ଯ ମାଳା ॥